ପୁଷ୍ପଦନ୍ତ ଗନ୍ଧର୍ବରାଜ ବିରଚିତ

# ମହିମ୍ନସ୍ତବ

( ଅର୍ଥସହିତ )

---

ଶ୍ରୀ ବଳରାମ ଦାସଙ୍କ ଦ୍ୱାରା

ପ୍ରଥମବାର ପ୍ରକାଶିତ ।



ପ୍ରାପ୍ତିସ୍ଥାନ :—
ଶ୍ରୀ ନିତ୍ୟାନନ୍ଦ ପୁସ୍ତକାଳୟ
ପୋ: ଅ: ଗୁରୁଚରଣଚୌକ
ବାଲୁବଜାର—କଟକ ।

ମୂଲ୍ୟ ୦ /୬ ଛଅପଇସା ମାତ୍ର ।

Digitized by srujanika@gmail.com

# ମହିମସ୍ତବ



ଶ୍ରୀ ଗଣେଶାୟ ନମଃ ।

ମହିମ୍ନଃପାରଂ ତେ ପରମବିଦୁଷୋ ଯଦ୍ୟସଦୃଶୀ
ସ୍ତୁତିର୍ବ୍ରହ୍ମାଦୀନାମପି ତଦବସନ୍ନାସ୍ତ୍ୱୟି ଗିରଃ ।
ଅଥାବାଚ୍ୟଃ ସର୍ବଃ ସ୍ୱମତିପରିଣାମାବଧି ଗୃଣନ୍
ମମାପ୍ୟେଷ ସ୍ତୋତ୍ରେ ହର ନିରପବାଦଃ ପରିକରଃ । ୧ ।
ଅତୀତଃ ପନ୍ଥାନଂ ତବ ଚ ମହିମା ବାଙ୍ମନସୟୋ
ରତଦ୍ୟାବୃତ୍ତ୍ୟା ଯଂ ଚକିତମଭିଧତ୍ତେ ଶ୍ରୁତିରପି ।

---

ହେ ସଦାଶିବ ! ତୁମ୍ଭ ମହିମାର ଇୟତ୍ତା ଜାଣି ନ ଥିବା ବ୍ୟକ୍ତିର ସ୍ତୁତି ଯେବେ ତୁମ୍ଭର ଯୋଗ୍ୟ ନୁହଇ ତେବେ ବ୍ରହ୍ମାଦିମାନଙ୍କ କୃତ ସ୍ତବ ବାକ୍ୟ ତୁମ୍ଭ ବିଷୟରେ ଅଯୋଗ୍ୟ ହୋଇଅଛି ବୋଲାଯିବ; ଯେହେତୁ ସେମାନେ ଆପଣଙ୍କ ସେହି ମହିମାର ଇୟତ୍ତା ବିଶେଷରୂପେ ଜାଣନ୍ତି ନାହିଁ । ଯେବେ ଆପଣାର ଜ୍ଞାନାନୁସାରେ ସ୍ତୁତି କଲେ ନିର୍ଦ୍ଦୋଷ ହୁଅଇ ତେବେ ତୁମ୍ଭର ସ୍ତବ କରିବା ବିଷୟରେ ମୋହର ଏହି ଆରମ୍ଭ ଅବଶ୍ୟ ନିନ୍ଦାରହିତ କି ଅନିନ୍ଦ୍ୟ ହୋଇ ପାରେ । ୧ ।

ହେ ଶିବ ! ତୁମ୍ଭର ମହିମାର ଇୟତ୍ତା ନ ଥିବାରୁ ସେହି ମହିମା ବାକ୍ୟ ଏବଂ ମନର ଗୋଚର ନୁହଇ । ଆଉ ସେହି ମହିମାକୁ ବର୍ଣ୍ଣନ କରିବା ବିଷୟରେ ବେଦ ମଧ୍ୟ ଭୀତଗ୍ରସ୍ତ ହୋଇ ରହଇ ଅର୍ଥାତ୍ ବେଦ ସମ୍ପୂର୍ଣ୍ଣରୂପେ ତୁମ୍ଭ ମହିମାକୁ ବର୍ଣ୍ଣନ କରି ନ ପାରେ । ଅତଏବ ସେହି ମହିମାର ସ୍ତୁତି ଅବା କିଏ କରିପାରେ । ଆଉ ସେହି ମହିମାର କେତେ ପ୍ରକାର ଗୁଣ ଏବଂ ସେ କାହାର ବିଷୟ ଏହା କେହି ଜାଣନ୍ତି ନାହିଁ । କେବଳ ଭକ୍ତମାନଙ୍କର ଭାବନା ଦେହସ୍ୱରୂପ ଆପଣଙ୍କର ଯେଉଁ

Digitized by srujanika@gmail.com

ସ କସ୍ୟ ସ୍ତୋତବ୍ୟଃ କତିବିଧଗୁଣଃ କସ୍ୟ ବିଷୟଃ
ପଦେ ତ୍ୱର୍ବାଚୀନେ ପତତି ନ ମନଃ କସ୍ୟ ନ ବଚଃ । ୨ ।
ମଧୁସ୍ଫୀତା ବାଚଃ ପରମମମୃତଂ ନିର୍ମିତବତ
ସ୍ତବ ବ୍ରହ୍ମନ୍ କିଂ ବାଗପି ସୁରଗୁରୋର୍ବିସ୍ମୟପଦଂ ।
ମମ ତ୍ୱେତାଂ ବାଣୀଂ ଗୁଣକଥନପୁଣ୍ୟେନ ଭବତଃ
ପୁନାମିତ୍ୟର୍ଥେଽସ୍ମିନ୍ ପୁରମଥନବୁଦ୍ଧିର୍ବ୍ୟବସିତା । ୩ ।
ତବୈଶ୍ୱର୍ଯ୍ୟଂ ଯତ୍ତଜ୍ଜଗଦୁଦୟରକ୍ଷାପ୍ରଳୟକୃତ୍
ତ୍ରୟୀବସ୍ତୁବ୍ୟସ୍ତଂ ତିସୃଷୁ ଗୁଣଭିନ୍ନାସୁ ତନୁଷୁ ।
ଅଭବ୍ୟାନାମସ୍ମିନ୍ ବରଦ ରମଣୀୟାମରମଣୀଂ
ବିହନ୍ତୁଂ ବ୍ୟାକ୍ରୋଶୀଂ ବିଦଧତ ଇହୈକେ ଜଡ଼ଧିୟଃ । ୪ ।

---

ଲୀଳାବତାର ଚନ୍ଦ୍ରଶେଖରାଦି ରୂପ ଅଛି, ତହିଁରେ କାହାର ଅବା ମନ ଓ ବଚନ ପତିତ ନ ହେବ କି ? ଅର୍ଥାତ୍ ସେହି ରୂପରେ ସମସ୍ତ ମନ ଓ ବଚନ ପତିତ ହୁଅଇ । ୨ ।

ହେ ବ୍ରହ୍ମନ୍ ! ମଧୁପ୍ରାୟ ସ୍ଫୀତ ଓ କୋମଳ, ପରମ ତୁଲ୍ୟ ଯେଉଁ ବଚନମାନଙ୍କରେ ଯୋଗାଦରେ ଦେବତାମାନେ ସନ୍ତୋଷ ଲାଭ କରନ୍ତି ସେହି ବଚନସକଳର ନିର୍ମାଣକର୍ତ୍ତା ଯେ ଆପଣ, ଆପଣଙ୍କ ସେହି ବଚନ ଦେବଗୁରୁବୃହସ୍ପତିଙ୍କର ସୁଦ୍ଧା ବିସ୍ମୟକୁ ଜନ୍ମାଏ । ହେ ପୁରମଥନ ! ଆପଣଙ୍କ ଗୁଣକଥନ-ଗୁଣ ଦ୍ୱାରା ମୋହର ଏହି ବାଣୀକି ପବିତ୍ର କରିବା ବାଞ୍ଛାରେ ଏହି ସ୍ତୁତି କରିବାପାଇଁ ବୁଦ୍ଧି ବଳାଉଅଛୁ । ୩ ।

ହେ ଶିବ ! ଆପଣଙ୍କର ଅନିର୍ବଚନୀୟ ଯେଉଁ ଐଶ୍ୱର୍ଯ୍ୟ ବା ଈଶ୍ୱର ସେ ରଜଃ ସତ୍ତ୍ୱ ତମୋଗୁଣମାନଙ୍କରେ ଭିନ୍ନଭିନ୍ନ ସ୍ୱରୂପରେ ବ୍ରହ୍ମା ବିଷ୍ଣୁ, ରୁଦ୍ର ଏହି ତିନି ଶରୀର ଧାରଣପୂର୍ବକ ସଂସାର ସୃଷ୍ଟି, ସ୍ଥିତି ପ୍ରଳୟକାରକ ରୂପରେ ଋକ୍ ଯଜୁ ସାମ ଏହି ବେଦତ୍ରୟରେ ବର୍ଣ୍ଣିତ ହୋଇଅଛି । ହେ ବରଦ ! ଏହି ଆପଣଙ୍କ ଐଶ୍ୱର୍ଯ୍ୟରେ ଅଭବ୍ୟ ଓ ମନ୍ଦମତି ବ୍ୟକ୍ତି-ମାନଙ୍କର ମନୋହର ଏବଂ ସାଧୁମାନଙ୍କର ଅସନ୍ତୋଷଜନକ ଏପରି କୁତର୍କବାଦକୁ ଜଡ଼ବୁଦ୍ଧି ବ୍ୟକ୍ତିମାନେ ପ୍ରକାଶ କରନ୍ତି । ୪ ।

Digitized by srujanika@gmail.com

କିମୀହଃ କିଂ କାୟଃ ସ ଖଲୁ କିମୁପାୟସ୍ତ୍ରିଭୁବନଂ
କିମାଧାରୋ ଧାତା ସୃଜତି କିମୁପାଦାନ ଇତି ଚ ।
ଅତର୍କ୍ୟୈଶ୍ୱର୍ଯ୍ୟେ ତ୍ୱୟ୍ୟନବସରଦୁସ୍ଥୋ ହତଧିୟଃ
କୁତର୍କୋଽୟଂ କାଂଶ୍ଚିନ୍ମୁଖରୟତି ମୋହାୟ ଜଗତଃ
ଅଜନ୍ମାନୋ ଲୋକାଃ କିମବୟବବନ୍ତୋଽପି ଜଗତା-
ମଧିଷ୍ଠାତାରଂ କିଂ ଭବବିଧିରନାଦୃତ୍ୟ ଭବତି ।
ଅନୀଶୋ ବା କୁର୍ଯ୍ୟାଦ୍ଭୁବନଜନନେ କଃ ପରିକରୋ
ଯତୋ ମନ୍ଦାସ୍ତ୍ୱାଂ ପତ୍ୟମରବର ସଂଶେରତ ଇମେ । ୬ ।

---

ହେ ଶିବ ! ସେହି ଧାତା ଯେ ବ୍ରହ୍ମା ସେ ଏହି ଯେଉଁ ତ୍ରିଭୁବନକୁ ସୃଜି ଅଛନ୍ତି ସେହି ଜଗତ୍ସର୍ଜନା ବିଷୟରେ କେଉଁ ଚେଷ୍ଟା ତାଙ୍କର ଏବଂ କେଉଁ କାୟ କି ଶରୀର ଧାରଣ କରି ଥାଇ କେଉଁ ଉପାୟରେ ତ୍ରିଭୁବନକୁ କରିଅଛନ୍ତି ସେହି ଭୁବନନିର୍ମାଣ ବିଷୟରେ ଉପାଦାନ ବା କଣ ? ଏହିପରି କୁତର୍କ ବିସ୍ତାରକ କି ମନ୍ଦବୁଦ୍ଧିମାନେ ଅତର୍କ ଐଶ୍ୱର୍ଯ୍ୟ ଯେ ଆପଣଙ୍କଠାରେ ନାନା କୁତର୍କମାନଙ୍କଦ୍ୱାରା ଜଗତର ମୋହ ନିମିତ୍ତ ବାଚାଳ ପ୍ରାୟ କହୁଥାନ୍ତି, ତାହା ନୋହୁଥିଲେ ଅର୍ଥାତ ଆପଣ ଯେ ସକଳକର୍ତ୍ତା ଏହା ସମସ୍ତେ ଜାଣିପାରୁଥିଲେ କେହି ନାରକୀ ନୋହି ସମସ୍ତେ ମୋକ୍ଷଗାମୀ ହୋଇଥାନ୍ତେ ଅତଏବ ଆପଣଙ୍କ ଇଚ୍ଛାକ୍ରମେ କେହି କେହି ମନ୍ଦବୁଦ୍ଧି ବ୍ୟକ୍ତିମାନେ ଏପରି କହନ୍ତି । ୫ ।

ହେ ସଦାଶିବ ! ଏହି ଯେ ପୃଥିବୀ ପ୍ରଭୃତି ଚତୁର୍ଦ୍ଦଶଲୋକ ସାକାର-ବନ୍ତ ହୋଇ ଅଜନ୍ମା ହୋଇପାରନ୍ତି କି ? ଅର୍ଥାତ୍ କର୍ତ୍ତା ବ୍ୟତିରେକେ ଆପଣା ଇଚ୍ଛାରେ ଜନ୍ମ ହୋଇ ପାରନ୍ତି କି ? ଏହା କଦାଚ ସମ୍ଭବ ନୁହଇ ଅର୍ଥାତ୍ ଜଗତ୍କର୍ତ୍ତା ଯେ ଆପଣ ତୁମ୍ଭ ବିନା ଆଉ କେହି ଏହି ଜଗତକୁ କରିପାରନ୍ତି ନାହିଁ କିମ୍ବା ଜଗତ୍ ଆପଣା ଇଚ୍ଛାରେ ହୋଇ ପାରଇ ନାହିଁ । ଅତଏବ ଅନୀଶର ଯେ ଆପଣ, ଆପଣା ସୃଷ୍ଟି ରଚନା କରିବା ସମୟରେ ପରିକର ଯେ ସାମଗ୍ରୀ ସେ ଅବା କଣ ? ହେ ଅମରବର ! ଯେଉଁ ହେତୁରୁ ମନ୍ଦମତିବ୍ୟକ୍ତି ପାପିଷ୍ଠମାନେ ଆପଣଙ୍କ ଠାରେ ନାନା ବିଷୟରେ ସଂଶୟ କରନ୍ତି ସେହି ହେତୁରୁ ସେମାନେ ମନ୍ଦମତି ଅଟନ୍ତି । ଈଶ୍ୱରଙ୍କ ବିନା ସୃଷ୍ଟି କାର୍ଯ୍ୟ କେହି କରି ନ ପାରେ ଏହା ଫଳିତାର୍ଥ । ୬ ।

Digitized by srujanika@gmail.com

ତ୍ରୟୀ ସାଂଖ୍ୟଂ ଯୋଗଃ ପଶୁପତିମତଂ ବୈଷ୍ଣବମିତି ।
ପ୍ରଭିନ୍ନେ ପ୍ରସ୍ଥାନେ ପରମିଦମଦଃ ପଥ୍ୟମିତି ଚ ।
ରୁଚୀନାଂ ବୈଚିତ୍ର୍ୟାଦୃଜୁକୁଟିଳନାନାପଥଜୁଷାଂ
ନୃଣାମେକୋ ଗମ୍ୟସ୍ତ୍ୱମସି ପୟସମର୍ଣ୍ଣବ ଇବ । ୭ ।
ମହୋକ୍ଷଂ ଖଟ୍ୱାଙ୍ଗଂ ପରଶୁରଜିନଂ ଭସ୍ମଫଣିନଃ
କପାଳଂ ଚେତୀୟତ୍ତବ ବରଦ ତନ୍ତ୍ରୋପକରଣଂ ।
ସୁରାସ୍ତାଂ ତାମୃଦ୍ଧିଂ ଦଧତି ଭବଦ୍ଭ୍ରୂପ୍ରଣିହିତାଂ ।
ନହି ସ୍ୱାତ୍ମାରାମଂ ବିଷୟମୃଗତୃଷ୍ଣା ଭ୍ରମୟତି । ୮ ।

---

ତ୍ରୟୀ ଯେ ବେଦତ୍ରୟ, ସାଙ୍ଖ୍ୟଶାସ୍ତ୍ର; ଯୋଗଶାସ୍ତ୍ର, ପଶୁପତିମତ ଓ ବୈଷ୍ଣବମତ ଏହିପରି ନାନାମତ ଥିବାରୁ ଅହଂକାରମାନେ ଆପଣା ଆପଣା ଉପାସ୍ୟମତକୁ ପଥ୍ୟ ବା ଉପାସନା ଯୋଗ୍ୟ ବୋଲି କହନ୍ତି । ଏହିପରି ରୁଚିର ବୈଚିତ୍ର୍ୟ ହେତୁରୁ ସରଳ ଓ କୁଟିଳ ପଥରେ ପଥିକମାନଙ୍କର ତୁମ୍ଭେ ଏକା ଗମ୍ୟ ଯେପରି ଜଳମାନଙ୍କର ନାନାପଥରେ ଗତିହେଲେ ହିଁବା ସମୁଦ୍ରରେ ପ୍ରବେଶ ହୁଅଇ ସେହିପରି ଯେ ଯେପରି ଯାହାକୁ କାହାକୁ ଉପାସନା କଲେ ସୁଦ୍ଧା ଶେଷରେ ବେଦାନ୍ତପ୍ରତିପାଦ୍ୟ ଅଦ୍ୱିତୀୟ ଯେ ଆପଣ ଆପଣଙ୍କ ନିକଟକୁ ସମସ୍ତଙ୍କର ଗତି ହୁଅଇ । ୭ ।

ହେ ଦେବ ! ବାହନ ନିମିତ୍ତ ମହାବୃଷଭ, ଖଟ୍ୱାଙ୍ଗ ବା ଧ୍ୟାନକାଳୀନ ଅବଲମ୍ବନାର୍ଥ କାଷ୍ଠଦଣ୍ଡ ବିଶେଷ, ପରଶୁ ବା ଅସ୍ତ୍ରବିଶେଷ ପିନ୍ଧିବାକୁ ବ୍ୟାଘ୍ରଚର୍ମ ଏବଂ ଉତ୍ତରୀୟ ପାଇଁ ଗଜଚର୍ମ, ଅଙ୍ଗଭୂଷଣ ନିମିତ୍ତ ଭସ୍ମ ଏବଂ ହାର ନିମିତ୍ତ ସର୍ପ, ପାତ୍ର ନିମିତ୍ତ ନରକପାଳ ଏହି ଏହି ପଦାର୍ଥ ସବୁ ଆପଣଙ୍କର ଉପକରଣ ବିଶେଷ । ଇନ୍ଦ୍ରାଦି ଦେବତାମାନଙ୍କର ଯେଉଁ ସବୁ ସମ୍ପତ୍ତି ତାହା ସକଳ ଆପଣଙ୍କ ଭ୍ରୂବିକ୍ଷେପ ମାତ୍ରେ ଜାତ ହୁଏଇ; ତଥାପି ସେହି ସମ୍ପତ୍ତି ସବୁ ଆପଣଙ୍କ ଚିତ୍ତକୁ ଆକର୍ଷଣ କରିପାରଇ ନାହିଁ । ଅର୍ଥାତ୍ ଉକ୍ତ ଇନ୍ଦ୍ରାଦି ସମ୍ପତ୍ତିରେ ଆପଣଙ୍କର ଇଚ୍ଛା ଜନ୍ମଇ ନାହିଁ, ଯେହେତୁ ଆପଣଙ୍କ ତୁଲ୍ୟ ଆତ୍ମାରାମ ବା ଜ୍ଞାନିମାନଙ୍କ ବିଷୟ ମୃଗତୃଷ୍ଣା ମୋହିତ କରି ନ ପାରେ ।

Digitized by srujanika@gmail.com

ଧ୍ରୁବଂ କଶ୍ଚିତ୍ ସର୍ବଂ ସକଳମପରସ୍ତ୍ୱଧ୍ରୁବମିଦଂ
ପରୋ ଧ୍ରୌବ୍ୟାଦ୍ ଧ୍ରୌବ୍ୟେ ଜଗତି ଗଦତି ବ୍ୟସ୍ତବିଷୟେ
ସମସ୍ତେଽପ୍ୟେତସ୍ମିନ୍ ପୁରମଥନ ତୈର୍ବିସ୍ମିତ ଇବ
ସ୍ତୁବନ୍ ଜିହ୍ରେମି ତ୍ୱାଂ ନ ଖଲୁ ନନୁ ଧୃଷ୍ଟା ମୁଖରତା । ୯ ।
ତବୈଶ୍ୱର୍ଯ୍ୟଂ ଯତ୍ନାଦ୍ୟଦୁପରି ବିରିଞ୍ଚିର୍ହରିରଧଃ
ପରିଚ୍ଛେତ୍ତୁଂ ଯାତାବନଲମନଲସ୍କନ୍ଧବପୁଷଃ ।
ତତୋ ଭକ୍ତିଶ୍ରଦ୍ଧାଭରଗୁରୁଗୃଣଦ୍ଭ୍ୟାଂ ଗିରିଶ ଯତ୍
ସ୍ୱୟଂ ତସ୍ଥେ ତାଭ୍ୟାଂ ତବ କିମନୁବୃତ୍ତିର୍ନ ଫଳତି । ୧୦ ।

---

ହେ ଦେବ ! କୌଣସି ବ୍ୟକ୍ତି ଅର୍ଥାତ୍ କପିଳଦେବ କହନ୍ତି ଯେ ସମସ୍ତ ପଦାର୍ଥର ପରମାଣୁ ସବୁ ନିତ୍ୟ; ବୌଦ୍ଧମାନେ କହନ୍ତି ଯେ ସମସ୍ତ ପଦାର୍ଥ ଅନିତ୍ୟ, ଆଉ କୌଣସିମାନେ କି ଗୌତମାଦିମାନେ କହନ୍ତି ଯେ ଆକାଶାଦି ନିତ୍ୟ ପୃଥିବ୍ୟାଦି ଅନିତ୍ୟ । ହେ ପୁରମଥନ ! ଉକ୍ତ ମତ ବାଦିମାନଙ୍କ ମତ ସବୁ ଶୁଣିଲେ ବିସ୍ମୟ ହେବାକୁ ହୁଅଇ ତଥାପି ଉକ୍ତ ବିଷୟ ସବୁର ବିଚାର କରିବା ବିଷୟରେ ଅପାରଗ ହୋଇ ସୁଦ୍ଧା ଆପଣଙ୍କର ସ୍ତବ କରିବା ବିଷୟରେ ମୋହର ଲଜ୍ଜା ହେଉ ନାହିଁ । ଯାହାନ୍ତୁ ତାହା କେବଳ ମୋହର ମୁଖରତା ବା ବାଚାଳତାକୁ ଧୃଷ୍ଟତା ବୋଲିବାକୁ ହେବ । ୯ ।

ହେ ଗିରିଶ ! ଆପଣଙ୍କର ଯେଉଁ ଅନଳମୂର୍ତ୍ତି କି ତେଜମୂର୍ତ୍ତି ତାହାର ଐଶ୍ୱର୍ଯ୍ୟ କି ଇୟତ୍ତା ଜାଣିବା କାରଣ ବ୍ରହ୍ମା ଊର୍ଦ୍ଧ୍ୱ ଭାଗକୁ ଓ ବିଷ୍ଣୁ ଅଧୋଭାଗକୁ ଯାଇ କିଛି ସ୍ଥିର କରି ନ ପାରିଲେ । ତହୁଁ ବ୍ରହ୍ମା ବିଷ୍ଣୁ ଦୁହେଁ ଅତିଶୟ ଶ୍ରଦ୍ଧା ଭକ୍ତି ଯୋଗରେ ସ୍ତୁତି କରିବାରୁ ଆପଣଙ୍କ ସ୍ଥୂଳ ମୂର୍ତ୍ତି ତାହାଙ୍କର ଦୃଷ୍ଟି ଗୋଚର ହେଲା । ଅତଏବ ଆପଣଙ୍କର ସେବା କଦାପି ବିଫଳ ହୁଅଇ ନାହିଁ । ୧୦ ।

Digitized by srujanika@gmail.com

ଅଯତ୍ନ ଦାପାଦ୍ୟ ତ୍ରିଭୁବନମବୈରବ୍ୟତିକରଂ
ଦଶାସ୍ୟୋ ଯଦ୍ବାହୂନଭୃତ ରଣକଣ୍ଡୂ ପରବଶାନ୍ ।
ଶିରଃପଦ୍ମଶ୍ରେଣୀରଚିତଚରଣାମ୍ଭୋରୁହବଲେଃ
ସ୍ଥିରାୟାସ୍ତ୍ୱଦ୍ଭକ୍ତେସ୍ତ୍ରିପୁରହର ବିସ୍ଫୂର୍ଜିତମିଦଂ । ୧୧ ।
ଅମୁଷ୍ୟ ତ୍ୱତ୍ସେବା ସମଧିଗତସାରଂ ଭୁଜବନଂ
ବଲାତ୍କୈଲାସେଽପି ତ୍ୱଦଧିବସତୌ ବିକ୍ରମୟତଃ ।
ଅଲଭ୍ୟା ପାତାଲେଽପ୍ୟଲସଚଲିତାଙ୍ଗୁଷ୍ଠଶିରସି
ପ୍ରତିଷ୍ଠା ତ୍ୱୟ୍ୟାସୀଦ୍ଧ୍ରୁବମୁପଚିତୋ ମୁହ୍ୟତି ଖଲଃ । ୧୨ ।

---

ହେ ତ୍ରିପୁରହର ! ରାବଣ ତ୍ରିଭୁବନକୁ ଅନାୟାସରେ ଅବୈର କ ଅପଣାର ଅଧୀନ କରିବା କାରଣ ରଣକଣ୍ଡୂ ପରବଶ ( ଯୁଦ୍ଧକୁଶଳ ) ଯେଉଁ ବାହୁମାନଙ୍କ ଧାରଣ କରିଥିଲା ତାହା କେବଳ ଆପଣଙ୍କଠାରେ ତାହାର ଯେଉଁ ସ୍ଥିର ଭକ୍ତି ଥିଲା ତହିଁର ଫଳ ସ୍ୱରୂପ । ସେହି ଭକ୍ତି ଉପରି ଅର୍ଥାତ୍ ତାହାର ଦଶମସ୍ତକମାନଙ୍କୁ ପଦ୍ମସ୍ୱରୂପ ଜ୍ଞାନକରି ଆପଣଙ୍କ ପାଦପଦ୍ମକୁ ସେହି ମସ୍ତକପଦ୍ମମାନଙ୍କରେ ପୂଜା କରିଥିବାରୁ ତହିଁର ଫଳସ୍ୱରୂପୀ ତାଦୃଶ ପ୍ରଭାବ ଲଭିଥିଲା । ୧୧ ।

ହେ ଦେବ ! ଏହି ରାବଣର ଆପଣଙ୍କ ସେବାଦ୍ୱାରା ପ୍ରାପ୍ତ ହୋଇ ଥିବା ଅତି ବଳିଷ୍ଠ ଯେଉଁ ଭୁଜସମୂହ ସେହି ଭୁଜମାନଙ୍କଦ୍ୱାରା ରାବଣ ଆପଣଙ୍କ ବସତି ଯେ କୈଳାସ ପର୍ବତ ତାହାକୁ ଉପାଡିବାରୁ ଆପଣ ତାହା ଜାଣିପରି ବାମପାଦର ବୃଦ୍ଧାଙ୍ଗୁଷ୍ଠି ଯୋଗେ ଅଳସଭାବରେ ଆକ୍ରମଣ କରନ୍ତେ ପର୍ବତ ସହିତରେ ରାବଣ ପାତାଳଗାମୀ ହୋଇଗଲା କିନ୍ତୁ ଆପଣ ଭକ୍ତପ୍ରିୟ ଆଶୁତୋଷ ଥିବାରୁ ରାବଣର ପୂର୍ବ ସେବାଭକ୍ତିକି ସ୍ମରଣ କରି ତାକୁ ପୁନରପି ଉଦ୍ଧାର କଲେ । ମାତ୍ର ରାବଣ ଖଳସ୍ୱଭାବ ଥିବାରୁ ଆପଣଙ୍କଠାରୁ ବର ପ୍ରାପ୍ତ ହୋଇ ଐଶ୍ୱର୍ଯ୍ୟଶାଳୀ ହୁଅନ୍ତେ ଆପଣଙ୍କ କୃତ ଉପକାର ସ୍ମରଣ କରି ପାରିଲା ନାହିଁ । ଅର୍ଥାତ୍ ଖଳମାନେ ଉପକାର ଅନୁପକାର ଦୁହିଙ୍କି ସମାନ ଜାଣନ୍ତି । ୧୨ ।

Digitized by srujanika@gmail.com

ଯଦୃଦ୍ଧିଂ ସୂତ୍ରାମ୍ନୋବରଦ ପରମୋଚ୍ଚୈରପିସତୀ
ମଧଶ୍ଚକ୍ରେ ବାଣଃ ପରିଜନବିଧେୟସ୍ତ୍ରିଭୁବନଃ ।
ନ ତଚ୍ଚିତ୍ରଂ ତସ୍ମିନ୍ ବରିବସିତରି ତ୍ୱଚ୍ଚରଣୟୋ-
ର୍ନକସ୍ୟାପ୍ୟୁନ୍ନତ୍ୟୈ ଭବତି ଶିରସସ୍ତ୍ୱୟ୍ୟବନତିଃ । ୧୩ ।
ଅକାଣ୍ଡବ୍ରହ୍ମାଣ୍ଡକ୍ଷୟଚକିତଦେବାସୁରକୃପା
ବିଧେୟସ୍ୟାସୀଦ୍ ଯସ୍ତ୍ରିନୟନବିଷଂ ସଂହୃତବତଃ ।
ସ କଲ୍ମାଷଃ କଣ୍ଠେ ତବ ନ କୁରୁତେ ନ ଶ୍ରିୟମହୋ
ବିକାରୋଽପି ଶ୍ଲାଘ୍ୟୋ ଭୁବନଭୟଭଙ୍ଗବ୍ୟସନିନଃ । ୧୪ ।
ଅସିଦ୍ଧାର୍ଥାନୈବ କ୍ୱଚିଦପି ସ ଦେବାସୁରନରେ
ନିବର୍ତ୍ତନ୍ତେ ନିତ୍ୟଂ ଜଗତି ଜୟିନୋ ଯସ୍ୟ ବିଶିଖାଃ ।

---

ହେ ଦେବ ! ତ୍ରିଭୁବନବିଜୟୀ ସେ ବାଣାସୁର ଆପଣଙ୍କ ଚରଣ ସେବାବଳରେ ଇନ୍ଦ୍ର ସମ୍ପତ୍ତିଠାରୁ ବଳୀ ଯେଉଁ ସମ୍ପତ୍ତି ପାଇଥିଲା ତାହା କିନ୍ତୁ ବାଣାସୁର ପକ୍ଷରେ ଆଶ୍ଚର୍ଯ୍ୟ ନୁହଇ । ଯେହେତୁ ଆପଣଙ୍କ ଚରଣ ସେବା ଯେ କୌଣସି ସମ୍ପତ୍ତିର କାରଣ ନୁହେ କି ? ଅର୍ଥାତ୍ ମୋକ୍ଷ ପର୍ଯ୍ୟନ୍ତ ସମ୍ପତ୍ତି ପ୍ରଦାନ କରଇ । ୧୩ ।

ହେ ଦେବ ! ସମସ୍ତ ବ୍ରହ୍ମାଣ୍ଡ କ୍ଷୟ ହୋଇ ଯିବା ଭୟରେ ଚକିତ ହୋଇଥିଲେ ଯେ ଦେବତା ଅସୁରମାନେ ସେମାନଙ୍କଠାରେ କୃପାବହି ସମୁଦ୍ରମନ୍ଥନରୁ ଯେଉଁ ବିଷ ଜନ୍ମିଥିଲା ତାହାକୁ ଗ୍ରାସ କଲ ଯେ ଆପଣ ଆପଣଙ୍କ କଣ୍ଠରେ ଯେଉଁ ବିଷର ଚିହ୍ନ ସ୍ୱରୂପ କାଳିମା ରହିଅଛି ତାହା ଆପଣଙ୍କର ଶୋଭାକୁ ସମ୍ପାଦନ କରୁନାହିଁ କି ? ଅର୍ଥାତ୍ ଭୂଷଣ ସ୍ୱରୂପ ଶୋଭାକୁ ଧାରଣ କରିଅଛି । ଯେହେତୁ ସମସ୍ତ ପ୍ରାଣୀଙ୍କର ଭୟ ବିନାଶକ ବ୍ୟକ୍ତିର ଯେ ବିକାର ତାହା ପ୍ରଶଂସା ଯୋଗ୍ୟ ହୁଅଇ । ୧୪ ।

ହେ ଦେବ ! ଦେବାସୁର ନର ଜଗତ୍ ଯେ ସ୍ୱର୍ଗ ମର୍ତ୍ତ୍ୟ ପାତାଳ ଏହି ତ୍ରିଭୁବନରେ କି ଦେବାସୁର ମନୁଷ୍ୟମାନଙ୍କଠାରେ ଯେଉଁ କନ୍ଦର୍ପର ବିଶିଖ କି ବାଣମାନେ ବିଫଳ ନୁହନ୍ତି ଅର୍ଥାତ୍ ଯେଉଁ କନ୍ଦର୍ପର ବାଣକୁ ଭୁବନ ବ୍ୟକ୍ତିମାନେ ଭୟ କରନ୍ତି, ସେହି କନ୍ଦର୍ପ ଆପଣଙ୍କୁ ଅନ୍ୟଦେବ

Digitized by srujanika@gmail.com

ସପଣ୍ୟନ୍ନାଣ ହ୍ୱାମେଉରସ୍ୱ ସାଧାରଣମଭୂତ୍
ସ୍ମରଃ ସ୍ମର୍ତ୍ତବ୍ୟାତ୍ମା ନହି ବଶିଷୁ ପଥ୍ୟଃ ପରିଭବଃ । ୧୫ ।
ମହୀ ପାଦାଘାତାଦ୍ ବ୍ରଜତି ସହସା ସଂଶୟ ପଦଂ
ପଦଂ ବିଷ୍ଣୋର୍ଭ୍ରାମ୍ୟଦ୍ଭୁଜପରିଘରୁଗ୍ଣଗ୍ରହଗଣଂ ।
ମୁହୁର୍ଦ୍ୟୌ ଦୌସ୍ଥ୍ୟଂ ଯାତ୍ୟନିଭୃତଜଟାତାଡ଼ିତତଟା
ଜଗଦ୍ରକ୍ଷାୟୈ ତ୍ୱଂ ନଟସି ନନୁ ବାମୈବ ବିଭୁତା । ୧୬ ।
ବିୟଦ୍ୱ୍ୟାପୀ ତାରାଗଣଗୁଣିତଫେନୋଦ୍ଗମରୁଚିଃ
ପ୍ରବାହୋ ବାରାଂ ଯଃ ପୃଷତଲଘୁଦୃଷ୍ଟଃ ଶିରସି ତେ

---

ଭୂଲି କ୍ଷାନ କର ବାଣ ପ୍ରୟୋଗ କରିବା ମାତ୍ରେ ସ୍ମରଣଶୀଳ ଶରୀରକୁ ଧାରଣ କଲା ଅର୍ଥାତ୍ ଆପଣଙ୍କଠାରେ ଅପରାଧ କରିବାରୁ ତାହାର ଶରୀର ଭସ୍ମ ହୋଇ ଯାଇ ନାମମାତ୍ର ସ୍ମରଣରେ ରହିଲା । ଯେହେତୁ ଜିତେନ୍ଦ୍ରିୟ ମାନଙ୍କଠାରେ ଯେଉଁ ପରାଭବ ତାହା କଦାପି ପଥ୍ୟ ନୁହଇ ଅର୍ଥାତ୍ ଜିତେନ୍ଦ୍ରିୟମାନଙ୍କୁ ଅମାନ୍ୟ କଲେ ଅମଙ୍ଗଳ ବିନା ମଙ୍ଗଳ ଘଟଇ ନାହିଁ ।

ବ୍ରହ୍ମାଙ୍କଠାରୁ ବର ପାଇ କୌଣସି ଦୈତ୍ୟ ସନ୍ଧ୍ୟାସମୟରେ ଜଗତକୁ ଭକ୍ଷଣ କରିବାପାଇ ମହାବଳ ବ୍ୟାଘ୍ରରୂପରେ ଆସନ୍ତେ ତାଙ୍କୁ ମୋହିତ କରି ଜଗତକୁ ରକ୍ଷାକରିବା କାରଣ ଆପଣ ସେହି ସନ୍ଧ୍ୟା ସମୟରେ ତାଣ୍ଡବ ନୃତ୍ୟ ଆରମ୍ଭ କରନ୍ତେ ଆପଣଙ୍କ ପାଦଘାତଦ୍ୱାରା ପୃଥିବୀ ପଡ଼ିବା ଉଠିବାରେ ରକ୍ଷା ରହି ପାରିବ କି ନା ଏହି ସଂଶୟ ପଦକୁ ବହିଥିଲା । ଆଉ ଆପଣଙ୍କ ଭୁଜମାନଙ୍କ ବିନ୍ୟାସ ଦ୍ୱାରା ଆକାଶ ସହିତ ଗ୍ରହଗଣମାନେ ଛୀଣତାକୁ ଭଜିଥିଲେ । ଏହିପରି ଜଗତକୁ ରକ୍ଷ କରିବା କାରଣ ମହାଦେବ ଯେଉଁ ନୃତ୍ୟ ଆରମ୍ଭ କରିଥିଲେ ତହିଁରେ ମହାଦେବଙ୍କ ମୁକ୍ତ ଜଟାଦ୍ୱାରା ଆକାଶମଣ୍ଡଳ ତାଡିତ ହୋଇଥିଲା । ଜଗତକୁ ରକ୍ଷା କରିବା କାରଣ ଯେ ଜଗତର ଏପରି ଅବସ୍ଥା କରାଇ ଥିଲେ ଏହାଦ୍ୱାରା ପ୍ରଭୁମାନଙ୍କର ଐଶ୍ୱର୍ଯ୍ୟସକଳର କାରଣ କେହି ବୁଝି ହୁଅଇ ନାହି ।

ହେ ଦେବ ! ଯେଉଁ ଜଳପ୍ରବାହ ଯେ ଗଙ୍ଗା ସେ ଆପଣଙ୍କ ମସ୍ତକ ଜଟାମଧ୍ୟରେ ଜଳବିନ୍ଦୁ ପ୍ରାୟ ଦେଖାଯାଏ ସେହି ଗଙ୍ଗା କିପରି ? ଆକାଶ

Digitized by srujanika@gmail.com

ଜଗଦ୍ଦ୍ୱୀପାକାରଂ ଜଲଧିବଲୟଂ ତେନ କୃତମି
ତ୍ୟନେନୈବୋନ୍ନେୟଂ ଧୃତମହିମଦିବ୍ୟଂ ତବ ବପୁଃ ।
ରଥଃ କ୍ଷୌଣୀ ଯନ୍ତା ଶତଧୃତିରଗେନ୍ଦ୍ରୋ ଧନୁରଥୋ
ରଥାଙ୍ଗେ ଚନ୍ଦ୍ରାର୍କୌ ରଥଚରଣପାଣିଃ ଶର ଇତି ।
ଦିଧକ୍ଷୋସ୍ତେ କୋଽୟଂ ତ୍ରିପୁରତୃଣମାଡ଼ମ୍ବରବିଧି
ର୍ବିଧେୟୈଃ କ୍ରୀଡ଼ନ୍ତ୍ୟୋ ନ ଖଲୁ ପରତନ୍ତ୍ରାଃ ପ୍ରଭୁଧିୟଃ ॥

---

ପ୍ରାପ୍ତ ସର୍ବବ୍ୟାପୀ ଆକାଶରେ ତାରାଗଣପ୍ରାପ୍ତ ଫେନସମୂହ ଯହିଁର ଶୋଭା ପ୍ରକାଶ କରୁଅଛନ୍ତି, ସେହି ଗଙ୍ଗାଜଳ ପ୍ରବାହଦ୍ୱାରା ଜଗତ ଦ୍ୱୀପାକାର ପ୍ରତୀତ ହୁଅଇ । ଯେଉଁ ଜଗତର ସମୁଦ୍ର ବଳୟାକାର ବା ପରିଖାପ୍ରାପ୍ତ ହୋଇଅଛି ଅର୍ଥାତ୍ ଅଗସ୍ତ୍ୟମୁନି ସମୁଦ୍ରଜଳ ଶୋଷଣ କଲା ପରେ ଯେଉଁ ଗଙ୍ଗାଜଳ ଯୋଗେ ସମୁଦ୍ର ପୂର୍ଣ୍ଣ ହୋଇ ଏହି ସମସ୍ତ ଜଗତକୁ ଘେରି ରହି ଅଛି ସେହି ଗଙ୍ଗା ଆପଣଙ୍କ ମସ୍ତକରେ ଜଳବିନ୍ଦୁପ୍ରାପ୍ତ ଦେଖାଯାଏ । ଅତଏବ ଉକ୍ତ ବିଷୟଦ୍ୱାରୁ ଦୃଷ୍ଟି ଦ୍ୱାରା ଆପଣଙ୍କ ଶରୀର କେଡ଼େ ଏବଂ କେପରି ଶୋଭା ତାହା ବୁଝାଏ । ୧୭ ।

ହେ ଦେବ ! ଆପଣଙ୍କ ନିକଟରେ ତୃଣ ତୁଲ୍ୟ ଯେଉଁ ତ୍ରିପୁରାସୁର ତାଙ୍କୁ ଦହନ କରିବା ସମୟରେ ଆପଣଙ୍କର ପୃଥିବୀ ରଥ, ବ୍ରହ୍ମା ସାରଥି, ମନ୍ଦରପର୍ବତ ଧନୁ ଏବଂ ଚନ୍ଦ୍ର ସୂର୍ଯ୍ୟ ସେହି ରଥର ଚକ୍ର, ବିଷ୍ଣୁ ଶର ଏପରି ସବୁ ହୋଇଥିଲେ । ତୃଣତୁଲ୍ୟ ଯେ ତ୍ରିପୁରାସୁର ତାଙ୍କୁ ନାଶ କରିବା କାରଣ ଆପଣଙ୍କର ଏପରି ଆଡ଼ମ୍ବର ହୋଇଥିଲା ଏହା କୁହାଯାଇ ନ ପାରେ । ଯେହେତୁ ଆପଣଙ୍କ ଇଚ୍ଛାମାତ୍ରେ ଜଗତର ସୃଷ୍ଟି ସ୍ଥିତି ପ୍ରଳୟ ହୋଇ ପାରେ, ତେବେ ତ୍ରିପୁରାସୁରଙ୍କୁ ନାଶକରିବା ଆପଣଙ୍କର ବିଚିତ୍ର ନୁହେ । କେବଳ ଆପଣାର ଅନୁଗତମାନଙ୍କ ସହିତ କ୍ରୀଡ଼ା କରିବା କାରଣ ଉକ୍ତ ଆଡମ୍ବର କରିଥିଲ ଯେହେତୁ ପ୍ରଭୁମାନଙ୍କର ବୁଦ୍ଧିବୃ ପରିଚାଳନ୍ତ ପରାଧୀନ ନୁହଇ । ୧୮ ।

Digitized by srujanika@gmail.com

ହରିସ୍ତେ ସହସ୍ରଂ କମଲବଲିମାଧାୟ ପଦୟୋ-
ର୍ଯଦେକୋନେ ତସ୍ମିନ୍ ନିଜମୁଦହରନ୍ନେତ୍ରକମଲଂ ।
ଗତୋ ଭକ୍ତ୍ୟୁଦ୍ରେକଃ ପରିଣତିମସୌ ଚକ୍ରବପୁଷା
ତ୍ରୟାଣାଂ ରକ୍ଷାୟୈ ତ୍ରିପୁରହର ଜାଗର୍ତ୍ତି ଜଗତାଂ । ୧୯ ।
କ୍ରତୌ ସୁପ୍ତେ ଜାଗ୍ରତ୍ତ୍ୱମସି ଫଲଯୋଗେ କ୍ରତୁମତାଂ ।
କ୍ୱ କର୍ମ ପ୍ରଧ୍ୱସ୍ତଂ ଫଳତି ପୁରୁଷାରାଧନମୃତେ ।
ଅତସ୍ତ୍ୱାଂ ସମ୍ପ୍ରେକ୍ଷ୍ୟ କ୍ରତୁଷୁ ଫଳଦାନପ୍ରତିଭୁବଂ
ଶ୍ରୁତୌ ଶ୍ରଦ୍ଧାଂ ବଧ୍ୱା ଦୃଢ଼ପରିକରଃ କର୍ମସୁ ଜନଃ । ୨୦ ।

---

ହେ ଦେବ ! ହରି ତ ନାରାୟଣ ସଂସାରପାଳନ ବିଷୟରେ ଅପାରଗ ହେବାରୁ ସହସ୍ରସଂଖ୍ୟକ ପଦ୍ମପୁଷ୍ପରେ ଆପଣଙ୍କ ଚରଣପୂଜାରେ ପ୍ରବୃତ୍ତ ହେଲେ । ଆପଣ ସେହି ବିଷ୍ଣୁଙ୍କ ଭକ୍ତି ଜାଣିବା କାରଣ ସେହି ସହସ୍ର ପଦ୍ମମଧ୍ୟରୁ ଏକପଦ୍ମ ହରଣ କରି ନଅନ୍ତେ ନାରାୟଣ ଆପଣା କୃତସଂଖ୍ୟା ପୂରଣ ନୋହିବାର ଦେଖି ପୂଜାଭଙ୍ଗ ଭୟରେ ଆପଣାର ପଦ୍ମନେତ୍ର ଥିବାର ଜାଣି ନେତ୍ର ଉପାଡ଼ି ପୂଜା କରି ଆପଣାର ଅଭୀଷ୍ଟ ସିଦ୍ଧିର ଇଚ୍ଛା କରନ୍ତେ ତାହାଙ୍କର ଏତାଦୃଶ ଗାଢ଼ଭକ୍ତି ଦେଖି ଆପଣ ସେହି ଭକ୍ତିର ଫଳସ୍ୱରୂପ ତ୍ରିଜଗତ୍ ରକ୍ଷା କାରଣ ତାହାଙ୍କୁ ସୁଦର୍ଶନ ଚକ୍ର ପ୍ରଦାନ କରିଅଛନ୍ତି । ଫଳତଃ ନାରାୟଣଙ୍କର ଗାଢ଼ଭକ୍ତି ଚକ୍ରରୂପ ଧାରଣ କରି ତ୍ରିଲୋକ ରକ୍ଷାକାର୍ଯ୍ୟରେ ସମର୍ଥ ହୋଇଅଛି । ୧୯ ।

ହେ ଦେବ ! କ୍ରତୁ କି ଯଜ୍ଞ ଶେଷ ହେଲେ ଯାଗକର୍ତ୍ତା ଯଜମାନମାନଙ୍କୁ ସେହି ଯାଗର ଫଳଦାନ ବିଷୟରେ ଆପଣ ଜାଗର୍ତ୍ତି ହୁଅନ୍ତି ଅର୍ଥାତ୍ ଆପଣ ଯାଗଫଳ ପ୍ରଦାନ କରନ୍ତି । ପରମପୁରୁଷ ଯେ ଆପଣ ଆପଣଙ୍କର ଆରାଧନା ନ କଲେ ସମସ୍ତ କର୍ମ ଧ୍ୱସ୍ତ କି ବିଫଳ ହୋଇଯାଏ । ଅତଏବ ସମସ୍ତ ଯାଗମାନଙ୍କର ଫଳଦାତା ଯେ ଆପଣ ଏହା ପ୍ରାଣୀମାନେ ଜାଣି ବେଦବାଦରେ ଶ୍ରଦ୍ଧା ରଖି ଯାଗାଦି କର୍ମକରିବା ବିଷୟରେ ଦୃଢ଼ ପରିକର ହୁଅନ୍ତି । ୨୦ ।

Digitized by srujanika@gmail.com

କ୍ରିୟାଦକ୍ଷୋ ଦକ୍ଷଃ କ୍ରତୁପତିରଧୀଶସ୍ତନୁଭୃତା-
ମୃଷୀଣାମାର୍ତ୍ତ୍ୱିଜ୍ୟଂ ଶରଣଦ ସଦସ୍ୟାଃ ସୁରଗଣାଃ ।
କ୍ରତୁଭ୍ରଂଶସ୍ତ୍ୱତ୍ତଃ କ୍ରତୁଫଲବିଧାନବ୍ୟସନିନୋ
ଧ୍ରୁବଂ କର୍ତ୍ତୁଃ ଶ୍ରଦ୍ଧା ବିଧୁରମଭିଚାରାୟ ହି ମଖାଃ । ୨୧ ।
ପ୍ରଜାନାଥଂ ନାଥ ପ୍ରସଭମଭିକଂ ସ୍ୱା ଦୁହିତରଂ ।
ଗତଂ ରୋହିଦ୍ଭୂତାଂ ରିରମୟିଷୁ ମୃଷ୍ୟସ୍ୟ ବପୁଷା ।
ଧନୁଷ୍ପାଣେର୍ଯାତଂ ଦିବମପି ସପତ୍ରାକୃତମମୁଂ
ତ୍ରସନ୍ତଂ ତେଽଦ୍ୟାପି ତ୍ୟଜତି ନ ମୃଗବ୍ୟାଧରଭସଃ । ୨୨ ।
ସ୍ୱଲାବଣ୍ୟାଶଂସାଧୃତଧନୁଷମହ୍ନାୟ ତୃଣବତ୍
ପୁରଃ ପ୍ଳୁଷ୍ଟଂ ଦୃଷ୍ଟ୍ୱା ପୁରମଥନପୁଷ୍ପାୟୁଧମପି ।

---

ହେ ଶରଣଦ ! ଯାବତ୍କ୍ରିୟାଦକ୍ଷରେ ଦକ୍ଷକ ଚତୁର ଏବ କ୍ରତୁପତି ଓ ଯଜ୍ଞକର୍ତ୍ତା ଜନମାନ ଅଥବା ପ୍ରାଣିମାନଙ୍କର ଈଶ ଓ ପ୍ରଜାପତି ଏପରି ଯେ ଦକ୍ଷପ୍ରଜାପତି ସେ ଋଷିମାନଙ୍କ ଏବଂ ଦେବତାମାନଙ୍କ ସହିତ ଯାଗ କରିବା ସମୟରେ ଯାଗଫଳଦାତା ଯେ ଆପଣ ଆପଣଙ୍କୁ ଅବମାନନା କରିବାରୁ ତାହାର କ୍ରତୁ କି ଯାଗ ସକଳ ନଷ୍ଟ ହୋଇଗଲା; ଯେହେତୁ ଆପଣଙ୍କଠାରେ ଶ୍ରଦ୍ଧାରହିତ କ୍ରିୟାସବୁ ଅମଙ୍ଗଳ ନିମିତ୍ତ ହୁଅଇ । ୨୧ ।

ହେ ନାଥ ! ବ୍ରହ୍ମା ଆପଣଙ୍କର ଦୁହିତା ସନ୍ଧ୍ୟାନାମ୍ନୀକନ୍ୟାକୁ ଦେଖି କାମକ ହୋଇ ରମଣ କରିବାକୁ ବଳାତ୍କାର କରନ୍ତେ ସନ୍ଧ୍ୟା ଭୟରେ ମୃଗୀ ରୂପ ଧରି ପଳାନ୍ତେ ବ୍ରହ୍ମା ମୃଗରୂପ ହୋଇ ତାହା ପଛେ ପଛେ ଗୋଡ଼ାଇଲେ । ସନ୍ଧ୍ୟା ତାହା ଦେଖି ଭୟରେ ଆପଣଙ୍କୁ ଚିନ୍ତା କରନ୍ତେ ଆପଣ ଧନୁର୍ବାଣ ଧରି ବ୍ୟାଧରୂପରେ ସେହି ମୃଗକୁ ଶର ପ୍ରୟୋଗ କରନ୍ତେ ତାହାଦେଖି ଭୟରେ ବ୍ରହ୍ମା ଖିନ୍ନହୋଇ ତ୍ରିଲୋକ ଭ୍ରମଣ କରି କାହିଁ ରକ୍ଷା ନ ପାଇବାରୁ ପରଶେଷରେ ଆପଣଙ୍କ ନିକଟରେ ଶରଣ ପଶନ୍ତେ ଆପଣ ତାହାଙ୍କୁ ହସ୍ତରେ ଧାରଣ କରିଅଛନ୍ତି ଅର୍ଥାତ୍ ଆଜ ପର୍ଯ୍ୟନ୍ତ ତାହାଙ୍କୁ ଆପଣ ହସ୍ତରୁ ତ୍ୟାଗ କରି ନାହାନ୍ତି । ୨୨ ।

ହେ ଦେବ ମଦନାନ୍ତକ ! ପୁଷ୍ପାୟୁଧ ମନ୍ମଥ ଅଳ୍ପକ୍ଷଣ ମଧ୍ୟରେ ତୃଣ ପ୍ରାୟ ଦଗ୍ଧ ହୋଇ ଯିବାର ଦେଖି, ଆପଣଙ୍କର ଅର୍ଦ୍ଧାଙ୍ଗ ହୋଇଥିବାରୁ

Digitized by srujanika@gmail.com

ଯଦ ସ୍ତୈଣଂ ଦେବୀ ଯମନିରତଦେହାର୍ଦ୍ଧ ଘଟନା-
ଦବୈତି ତ୍ୱାମଦ୍ଧାବତ ବରଦ ମୁଗ୍ଧା ଯୁବତୟଃ । ୨୩ ।
ଶ୍ମଶାନେଷ୍ୱାକ୍ରୀଡାଃ ସ୍ମରହରପିଶାଚାଃ ସହଚରା
ଶ୍ଚିତାଭସ୍ମାଲେପଃ ସ୍ରଗପି ନୃକରୋଟୀପରିକରଃ ।
ଅମଙ୍ଗଲ୍ୟଂ ଶୀଲ ତବ ଭବତୁ ନାମୈବମଖିଲଂ
ତଥାପି ସ୍ମର୍ତ୍ତୄଣାଂ ବରଦ ପରମଂ ମଙ୍ଗଲମସି । ୨୪ ।
ମନଃପ୍ରତ୍ୟକ୍ ଚିତ୍ତେ ସବିଧମବଧାୟାତ୍ତମରୁତଃ
ପ୍ରହୃଷ୍ୟଦ୍ରୋମାଣଃ ପ୍ରମଦସଲିଲୋତ୍ସଙ୍ଗିତଦୃଶଃ ।
ଯଦାଲୋକ୍ୟାହ୍ଲାଦଂ ହ୍ରଦ ଇବ ନିମଜ୍ୟାମୃତମୟେ
ଦଧତ୍ୟନ୍ତସ୍ତତ୍ତ୍ୱଂ କିମପି ଯମିନସ୍ତତ୍ କିଲ ଭବାନ୍ । ୨୫ ।

---

ପାର୍ବତୀ ଯେବେ ଆପଣାରରୂପ ଲାବଣ୍ୟକୁ ପ୍ରଶଂଶାକରି ଅପଣଙ୍କୁ ନାରୀବଶ କାମୁକ ବୋଲି ଜ୍ଞାନ କରନ୍ତି ତେବେ ସ୍ତ୍ରୀମାନେ ଅତି ଅଜ୍ଞାନ ବୋଲିବାକୁ ହେବ ଏହା ନିଶ୍ଚୟ କଥା । ୨୩ ।

ହେ ମଦନାନ୍ତକ ! ଅପଣଙ୍କର କ୍ରୀଡ଼ାସ୍ଥାନ ଶ୍ମଶାନ ଭୂମି, ପିଶାଚମାନେ ସହଚର, ଶ୍ମଶାନଭସ୍ମ ଦେହର ଭୂଷଣ, ମୃତମନୁଷ୍ୟମାନଙ୍କ ମୁଣ୍ଡମାଳା, ମନୁଷ୍ୟମୁଣ୍ଡର କପାଳ ପାନପାତ୍ର । ଏହିପରି ଅପଣଙ୍କର ସମସ୍ତ ବିଷୟ ଅମଙ୍ଗଳକର ହେଲେ ସୁଦ୍ଧା ଅପଣଙ୍କୁ ଯେଉଁମାନେ ସ୍ମରଣ କରନ୍ତି ସେମାନଙ୍କର ସମସ୍ତ ମଙ୍ଗଳ ହୁଅଇ । ୨୪ ।

ହେ ଦେବ ! ଅମ୍ଭାଦିମ ଯୋଗିମାନେ ସମସ୍ତ ଇନ୍ଦ୍ରିୟମାନଙ୍କୁ ସଂଯମ କରି ପୂରକକୁମ୍ଭକାଦିଦ୍ୱାରା ବାୟୁଧାରଣପୂର୍ବକ କୌଣସି ଅନିର୍ବଚନୀୟ ପଦାର୍ଥକୁ ସାକ୍ଷାତ୍ କରି ପୁଲକାଙ୍କିତ ଶରୀର ହୋଇ ଆନନ୍ଦମୟ ଅମୃତ ହ୍ରଦରେ ମଗ୍ନ ହୁଅନ୍ତି ଏବଂ ଆନନ୍ଦାଶ୍ରୁ ପରିପୂର୍ଣ୍ଣଚକ୍ଷୁ ହୋଇ ସର୍ବଦା ପରମାହ୍ଲାଦକୁ ଅନୁଭବ କରନ୍ତି । ସେହି ଯୋଗିମାନେ ଯେଉଁ ପରମାତ୍ମାକୁ ଧ୍ୟାନ କରନ୍ତି ଅପଣ ସେହି ପରମାତ୍ମା । ୨୫ ।

Digitized by srujanika@gmail.com

ତ୍ୱମର୍କସ୍ତ୍ୱଂ ସୋମସ୍ତ୍ୱମସି ପବନସ୍ତ୍ୱଂ ହୁତବହ
ସ୍ତ୍ୱମାପସ୍ତ୍ୱଂ ବ୍ୟୋମ ତ୍ୱମୁ ଧରଣିରାତ୍ମା ତ୍ୱମିତି ଚ ।
ପରିଚ୍ଛିନ୍ନାମେବଂ ତ୍ୱୟି ପରିଣତା ବିଭ୍ରତି ଗିରଂ
ନ ବିଦ୍ମସ୍ତତ୍ତ୍ୱଂ ବୟମିହ ତୁ ଯତ୍ତ୍ୱଂ ନ ଭବସି । ୨୬ ।
ତ୍ରୟୀଂ ତିସ୍ରୋବୃତ୍ତୀସ୍ତ୍ରିଭୁବନମଥୋ ତ୍ରୀନପି ସୁରା
ନକାରାଦ୍ୟୈର୍ବର୍ଣ୍ଣୈସ୍ତ୍ରିଭିରଭିଦଧତ୍ତୀର୍ଣ୍ଣବିକୃତିଃ ।
ତୁରୀୟଂ ତେ ଧାମ ଧ୍ୱନିଭିରବରୁନ୍ଧାନମଣୁଭିଃ
ସମସ୍ତବ୍ୟସ୍ତଂ ତ୍ୱାଂ ଶରଣଦ ଗୃଣା ତ୍ୟୋମିତି ପଦଂ । ୨୭ ।
ଭବଃ ସର୍ବୋ ରୁଦ୍ରଃ ପଶୁପତିରଥୋଗ୍ରଃ ସହ ମହାଂ
ସ୍ତଥା ଭୀମେଶାନାବିତି ଯଦଭିଧାନାଷ୍ଟକମିଦଂ ।
ଅମୁଷ୍ମିନ୍ ପ୍ରତ୍ୟେକଂ ପ୍ରବିଚରତି ଦେବଃ ଶ୍ରୁତିରପି
ପ୍ରିୟାୟାସ୍ମୈ ଧାମ୍ନେ ପ୍ରଣିହିତ ନମସ୍ୟୋସ୍ମି ଭବତେ । ୨୮ ।

---

ହେ ଦେବ ! ତୁମ୍ଭେ ଅର୍କ ବା ସୂର୍ଯ୍ୟ; ସୋମ ବା ଚନ୍ଦ୍ର, ପବନ, ହୁତବହ ବା ଅଗ୍ନି, ଅପ ବା ଜଳ, ବ୍ୟୋମ ବା ଆକାଶ, ଧରଣୀ ବା ପୃଥିବୀ, ଅର୍ଥାତ୍ ଆପଣ ସକଳ ପଦାର୍ଥରେ ବ୍ୟାପିଅଛ । ଆପଣଙ୍କର ଇୟତ୍ତା ବା ପରିମାଣ କେହି ଜାଣି ପାରନ୍ତି ନାହିଁ । ଅତଏବ ଆପଣଙ୍କ ଠାରୁ ଭିନ୍ନ ହୋଇ ବା କି ପଦାର୍ଥ ଅଛି ତାହା ବୋଲାଯାଇ ନ ପାରେ ।

ହେ ଶରଣଦ ! ଅକାର ଉକାର ମକାର ତ୍ରିବର୍ଣ୍ଣାତ୍ମକ, ଭୂଃ ଭୁବଃ ସ୍ୱ, ତ୍ରିଭୁବନାତ୍ମକ, ବ୍ରହ୍ମା ବିଷ୍ଣୁ ରୁଦ୍ରାତ୍ମକ, ଋକ ଯଜୁ ସାମଟି ବେଦାତ୍ମକ ଏରୂପ ଯେ ପ୍ରଣବବର୍ଣ୍ଣ ବା ଓଁକାରବର୍ଣ୍ଣ ସେ ଆପଣଙ୍କର ଅବୟବ ସ୍ୱରୂପ । ସେହି ପ୍ରଣବବର୍ଣ୍ଣ ଯେ ଆପଣଙ୍କ ଅବୟବ ସେ ତୁରୀୟଧାମ ବା ବ୍ରହ୍ମା ବିଷ୍ଣୁ ରୁଦ୍ରାଦିଙ୍କ ଉତ୍ପତ୍ତି ସ୍ଥାନ ବିନ୍ଦୁରୂପ ସର୍ବ ବ୍ୟାପକ ଅଟଇ । ଫଳତଃ ଆପଣଙ୍କଠାରୁ ସମସ୍ତ ଜଗତର ସୃଷ୍ଟି ସ୍ଥିତି ପ୍ରଳୟ ହୁଅଇ ଏବଂ ଆପଣ ସମସ୍ତ ବ୍ରହ୍ମାଣ୍ଡର ଅଧିକର୍ତ୍ତା ଅଟନ୍ତି । ୨୭ ।

ହେ ଦେବ ! ଜଳ, ପୃଥିବୀ, ଅଗ୍ନି, ପଜ୍ଞାକର୍ତ୍ତା, ଯଜମାନ, ବାୟୁ ଚନ୍ଦ୍ର, ଆକାଶ ଓ ସୂର୍ଯ୍ୟ ଏହି ଅଷ୍ଟମୂର୍ତ୍ତି ପ୍ରତିପାଦକ ଜୋ ଭବ, ଶର୍ବ

Digitized by srujanika@gmail.com

ନମୋ ନେଦିଷ୍ଠାୟ ପ୍ରିୟଦବ ଦବିଷ୍ଠାୟ ଚ ନମୋ-
ନମ କ୍ଷୋଦିଷ୍ଠାୟ ସ୍ମରହରମହିଷ୍ଠାୟ ଚ ନମଃ ।
ନମୋ ବର୍ଷିଷ୍ଠାୟ ତ୍ରିନୟନୟବିଷ୍ଠାୟ ଚ ନମୋ
ନମଃ ସର୍ବସ୍ମୈ ତେ ତଦିଦମିତି ସର୍ବାୟ ଚ ନମଃ । ୧୯ ।
ବହୁଲରଜସେ ବିଶ୍ୱୋତ୍ପତ୍ତୌ ଭବାୟ ନମୋନମଃ
ପ୍ରବଲତମସେ ତତ୍ସଂହାରେ ହରାୟ ନମୋନମଃ
ଜନସୁଖକୃତେ ସତ୍ତ୍ୱୋଦ୍ରିକ୍ତୌ ମୃଡାୟ ନମୋନମଃ
ପ୍ରମହସି ପଦେ ନିସ୍ତ୍ରୈଗୁଣ୍ୟେ ଶିବାୟ ନମୋନମଃ । ୧୦ ।

---

ରୁଦ୍ର, ପଶୁପତି, ଉଗ୍ର, ମହାଦେବ, ଭୀମ, ଈଶାନ ଏହି ଅଠନାମ ଆପଣଙ୍କର । ଏହି ନାମମାନଙ୍କ ମଧ୍ୟରୁ ଏକ ଏକ ନାମକୁ ଶ୍ରବଣ କରିବା କାରଣ ବ୍ରହ୍ମାଦି ଦେବତାମାନେ ସର୍ବଦା ଅକାଂକ୍ଷା କରନ୍ତି । ହେ ଶିବ ! ଉକ୍ତ ଅଷ୍ଟମୂର୍ତ୍ତିମୟ ଯେ ଆପଣ ଆପଣଙ୍କୁ ସର୍ବଦା ଭକ୍ତିର ସହିତ ମନୋବଚନ କର୍ତ୍ତବ୍ୟରେ ପୁନଃପୁନ ନମସ୍କାର କରୁଅଛୁ । ୨୮ ।

ହେ ଦେବ ! ଭକ୍ତର ଭକ୍ତି ଯୋଗେ ନିକଟବର୍ତ୍ତୀ, ଭକ୍ତିଶୂନ୍ୟ-ବ୍ୟକ୍ତି ପ୍ରତି ଅତିଦୂରବର୍ତ୍ତୀ ସୂକ୍ଷ୍ମଦର୍ଶୀ ବ୍ରହ୍ମଜ୍ଞାନୀମାନଙ୍କ ପ୍ରତି ଅତିସୂକ୍ଷ୍ମରୂପ ବା ପରମାଣୁ ରୂପ, ସକାମ ଭକ୍ତିମାନଙ୍କ ପ୍ରତି ଚନ୍ଦ୍ରଶେଖର ଗଙ୍ଗାଧରାଦି ରୂପ, ସମସ୍ତ ଜଗତର କାରଣଯୋଗେ ଅତି ପ୍ରାଚୀନରୂପ, ଜନ୍ମମରଣାଦି ରହିତଯୋଗେ ଯୁବାରୂପ, ଏହି ଏହି ରୂପମାନଙ୍କରେ ବର୍ତ୍ତିତ ଯେ ଆପଣ ଏବଂ ସକଳ ବିଷୟରୁ ଅତିକ୍ରାନ୍ତ ଅଟ ଯେ ଆପଣ, ଆପଣଙ୍କୁ ପୁନଃପୁନ ନମସ୍କାର କରୁଅଛୁ । ୨୯ ।

ହେ ଭବ ! ଜଗତର ସୃଷ୍ଟି କାରଣ ବ୍ରହ୍ମରୂପ ଯେ ଆପଣ, ଆପଣଙ୍କୁ ନମସ୍କାର । ହେ ହର ! ସମସ୍ତ ପ୍ରଳୟକାରଣ ରୁଦ୍ରରୂପ ଯେ ଆପଣ ଆପଣଙ୍କୁ ନମସ୍କାର । ହେ ମୃଡ଼ ! ସୃଷ୍ଟି ପାଳନ ନିମିତ୍ତ ବିଷ୍ଣୁରୂପ ଯେ ଆପଣ ଆପଣଙ୍କୁ ନମସ୍କାର । ଭକ୍ତମାନଙ୍କର ମୁକ୍ତିଦେବା କାରଣ ତ୍ରିଗୁଣାତୀତ ସର୍ବବ୍ୟାପକ ଶିବ ବା ମଙ୍ଗଳରୂପ ଯେ ଆପଣ ଆପଣଙ୍କୁ ପୁନଃ ପୁନ ନମସ୍କାର । ୩୦ ।

Digitized by srujanika@gmail.com

କୃଶପରିଣତି ଚେତଃ କ୍ଲେଶବଶ୍ୟଂ କ୍ୱ ଚେଦଂ
କ୍ୱ ଚ ତବ ଗୁଣସୀମୋଲଂଘିନୀ ଶଶ୍ୱଦୃଦ୍ଧିଃ ।
ଇତି ଚକିତମମନ୍ଦୀକୃତ୍ୟ ମାଂ ଭକ୍ତିରାଧା-
ଦ୍ୱରଦଚରଣୟୋସ୍ତେ ବାକ୍ୟପୁଷ୍ପୋପହାରଂ । ୩୧ ।
ଅସିତଗିରିସମଂ ସ୍ୟାତ୍କଜ୍ଜଳଂ ସିନ୍ଧୁପାତ୍ରେ
ସୁରତରୁବରଶାଖା ଲେଖନୀ ପତ୍ରମୁର୍ବୀ ।
ଲିଖତି ଯଦି ଗୃହୀତ୍ୱା ଶାରଦା ସର୍ବକାଳଂ
ତଦପି ତବ ଗୁଣାନାମୀଶ ପାରଂ ନ ଯାତି । ୩୨ ।
ଅସୁରସୁରମୁନୀନ୍ଦ୍ରୈରର୍ଚ୍ଚିତସ୍ୟେନ୍ଦୁମୌଳେ-
ର୍ଗ୍ରଥିତଗୁଣମହିମ୍ନୋ ନିର୍ଗୁଣସ୍ୟେଶ୍ୱରସ୍ୟ ।
ସକଳଗୁଣବରିଷ୍ଠଃ ପୁଷ୍ପଦନ୍ତାଭିଧାନୋ
ରୁଚିରମଲଘୁବୃତ୍ତୈଃ ସ୍ତୋତ୍ରମେତଚ୍ଚକାର । ୩୩ ।
ଅହରହରନବଦ୍ୟଂ ଧୂର୍ଜ୍ଜଟେଃ ସ୍ତୋତ୍ରମେତତ୍
ପଠତି ପରମଭକ୍ତ୍ୟା ଶୁଦ୍ଧଚିତ୍ତଃ ପୁମାନ ଯଃ ।

---

ହେ ଦେବ ! ମୋହର ଏହି ଅତିଷୀଣ ଏବଂ ସର୍ବଦା ଦୁଃଖିତ ଯେ ଚିତ୍ତ କି ମନ କେଉଁଠାରେ ସକଳ ଗୁଣମାନଙ୍କର ସୀମାକୁ ଉଲ୍ଲଂଘନ କରିଅଛି ଆପଣଙ୍କର ଯେଉଁ ବୃଦ୍ଧି ଯେ ବୃଦ୍ଧିକି ମହିମା ସକଳ ଯେ କେଉଁଠାରେ ଏହି ବିଷୟକୁ ଚିନ୍ତା କରି ମୋହର ସ୍ତବ କରିବାର ଇଚ୍ଛା ନିରାଶ ଭାବକୁ ଭଜିଲେହେଁ ଭକ୍ତି ଅମନ୍ଦଭାବରେ ଆପଣଙ୍କ ସ୍ତବ କରିବାକୁ ମୋତେ ପ୍ରବୃତ୍ତ ହଅନ୍ତେ ଆପଣଙ୍କ ଚରଣ କମଳରେ ଏହି ସ୍ତବ ସ୍ୱରୂପ ପୁଷ୍ପାଞ୍ଜଳିକି ଉପହାର ସ୍ୱରୂପ ପ୍ରଦାନ କଲି । ୩୧ ।

ହେ ଶିବ ! ଆପଣଙ୍କ ମହିମାକୁ ପ୍ରକାଶ କରିବାକୁ ହେଲେ ପର୍ବତ ତୁଲ୍ୟ କାଳି ସମୁଦ୍ରପାତ୍ରରେ ରଖି କଳ୍ପବୃକ୍ଷମାନଙ୍କ ଶାଖାମାନଙ୍କୁ କଲମ କରି ସମସ୍ତ ପୃଥିବୀକି ପତ୍ର କରି ଶାରଦା ବସି ସର୍ବଦା ଲେଖିଲେହେଁ ହେ ଈଶ ! ତଥାପି ଆପଣଙ୍କ ଗୁଣ ମହିମାର ଶେଷସୀମାକୁ ଲଭି ପାରିବେ ନାହିଁ । ୩୨ ।

ଇତି ମହିମ୍ନସ୍ତବସ୍ୟ ଭାଷାର୍ଥ ସମାପ୍ତ

Digitized by srujanika@gmail.com

ସ ଭବତି ଶିବଲୋକେ ରୁଦ୍ରତୁଲ୍ୟସ୍ତଥାଽତ୍ର
ପ୍ରଚୁରତରଧନାୟୁଃପୁତ୍ରବାନ୍ କୀର୍ତ୍ତିମାଂଶ୍ଚ । ୩୪ ।
ଦୀକ୍ଷା ଦାନଂ ତପସ୍ତୀର୍ଥଂ ଜ୍ଞାନଂ ଯାଗାଦିକାଃ କ୍ରିୟାଃ ।
ମହିମ୍ନସ୍ତବପାଠସ୍ୟ କଳାଂ ନାର୍ହନ୍ତି ଷୋଡ଼ଶୀଂ । ୩୫ ।
ଆସମାପ୍ତମିଦଂ ସ୍ତୋତ୍ରଂ ପୁଣ୍ୟଂ ଗନ୍ଧର୍ବଭାଷିତଂ ।
ଅନୁପମଂ ମନୋହାରି ଶିବମୀଶ୍ୱରବର୍ଣ୍ଣନଂ । ୩୬ ।
ମହେଶାନ୍ନାପରୋ ଦେବୋ ମହିମ୍ନୋ ନୋ ପରସ୍ତୁତିଃ ।
ଅଘୋରାନ୍ନାପରୋ ମନ୍ତ୍ରୋ ନାସ୍ତି ତତ୍ତ୍ୱଂ ଗୁରୋଃ ପରଂ । ୩୭ ।
କୁସୁମଦଶନନାମା ସର୍ବଗନ୍ଧର୍ବରାଜଃ
ଶିଶୁଶଶଧରମୌଳେର୍ଦ୍ଦେବଦେବସ୍ୟ ଦାସଃ ।
ସ ଖଲୁ ନିଜମହିମ୍ନୋ ଭ୍ରଷ୍ଟ ଏବାସ୍ୟ ରୋଷାତ୍
ସ୍ତବନମିଦମକାର୍ଷୀଦ୍ଦିବ୍ୟଦିବ୍ୟଂ ମହିମ୍ନଃ । ୩୮ ।
ସୁରବରମୁନିପୂଜ୍ୟଂ ସ୍ୱର୍ଗମୋକ୍ଷୈକହେତୁଂ
ପଠତି ଯଦି ମନୁଷ୍ୟ ପ୍ରାଞ୍ଜଳି ନାନ୍ୟଚେତାଃ ।
ବ୍ରଜତି ଶିବସମୀପଂ କିନ୍ନରୈଃ ସ୍ତୂୟମାନଃ ।
ସ୍ତବନମିଦମମୋଘଂ ପୁଷ୍ପଦନ୍ତପ୍ରଣୀତଂ । ୩୯ ।
ଶ୍ରୀପୁଷ୍ପଦନ୍ତମୁଖପଙ୍କଜନିର୍ଗତେନ
ସ୍ତୋତ୍ରେଣ କିଲ୍ବିଷହରେଣ ହରପ୍ରିୟେଣ ।
କଣ୍ଠସ୍ଥିତେନ ପଠିତେନ ସମାହିତେନ
ସୁପ୍ରୀଣିତୋ ଭବତି ଭୂତପତିର୍ମହେଶଃ । ୪୦ ।
ଇତ୍ୟେଷା ବାଙ୍ମୟୀ ପୂଜା ଶିବାଶଙ୍କରପାଦୟୋଃ ।
ଅର୍ପିତା ତେନ ମେ ଦେବ ପ୍ରୀୟତାଂ ଶ୍ରୀସଦାଶିବ । ୪୧ ।
ଯାଚେଽହଂ ଯାଚେଽହଂ ଶିବତବଚରଣାରବିନ୍ଦୟୋର୍ଭକ୍ତିଂ
ଯାଚେଽହଂ ଯାଚେଽହଂ ପୁନରପି ତାମେବ ତାମେବ । ୪୨ ।

ଇତି ଶ୍ରୀ ଗନ୍ଧର୍ବରାଜଂ ପୁଷ୍ପଦନ୍ତାଚାର୍ଯ୍ୟବିରଚିତଂ
ମହିମ୍ନସ୍ତୋତ୍ର ସମ୍ପୂର୍ଣ୍ଣଂ ।

---

କଟକ ଦତ୍ତପ୍ରେସରେ ଶ୍ରୀ ଭଗବାନ ଦତ୍ତଙ୍କ ଦ୍ୱାରା
ମେସନ୍ୟନ୍ତ୍ରେ ମୁଦ୍ରିତ । ୧୯୩୩ ।

Digitized by srujanika@gmail.com

# ବିଜ୍ଞାପନ



ଶ୍ରୀକୃଷ୍ଣଲୀଳା ନାଟକର ସୁଦକ୍ଷ ଲେଖକ
ବ୍ରଜବାସୀ ବାବାଜୀ
ଶ୍ରୀ ବୈଷ୍ଣବ ଚରଣ ଦାସଙ୍କ ପ୍ରଣୀତ

ଶ୍ରୀକୃଷ୍ଣଙ୍କ ମାଳମୀବେଶ ଟ ୦ ୵୬
" ନାପିତୁଣୀବେଶ ଟ ୦ ୵୬
" ଭଜଦମା ବେଶ ଟ ୦ ୵୬
" ପ୍ରେମଯୋଗିବେଶ ଟ ୦ ୵୬
" ବଣିଆଣୀ ବେଶ ଟ ୦ ୵୬
" ଢାଡ଼ସ ବେଶ ଟ ୦ ୵୬
" ପାଟରାଣୀ ବେଶ ଟ ୦ ୵୬
" ଗାୟୁଣୀ ବେଶ ଟ ୦ ୵୬
" ଚକାରୁଣୀବେଶ ଟ ୦ ୵୬
" ବଦେଶିନୀବେଶ ଟ ୦ ୵୬
" ଷବରଣୀ ବେଁଷ ଟ ୦ ୵୬

ରାମଙ୍କ ବନ୍ନମୃଗୀ ଟ ୦ ୵୩
ସୀତାଙ୍କ ମଥାମଣି ଟ ୦ ୵୬
ମୋ କାଳିଆ ସୁନା ଟ ୦ ୷
ସଚିତ୍ର ସାବିତ୍ରୀ ପୁରାଣ ଟ ୦ ୷
" ପାକେଟ ଟ ୦ ୯
ଷଧବାଦେଈ ବାନ ଟ ୦ /
ଚଦଟ ଚମ୍ପା ଟ ୦ /

## ନାଟକ

କଂସବଧ ନାଟକ ଟ ୦ ୵୷
ଅବ୍ଦ ବୃନ୍ଦାବନ ଚମ୍ପୁ ଟ ୦ ୯
ପ୍ରେମ ବିଳାସ ଟ ୦ ।୷
ବ୍ରଜ ବର୍ଣ୍ଣନ ଟ ୦ ।୷
ମଥୁରା ଯାତ୍ରା ଟ ୦ ।
ଭକ୍ତସାର ଟ ୦ ।
ନକୁଞ୍ଜ ବିହାର ଟ ୦ ୷
ବକାସୁର ବଧ ଟ ୦ ୷
ରାଧା ବିନୋଦ ଟ ୦ ।
ଶ୍ରୀରାଧାଙ୍କ ବୀରବେଶ ଟ ୦ ୵୬
" ଗନ୍ଧର୍ବବେଶ ଟ ୦ ୵୬
" ରାଜ ବେଶ ଟ ୦ ୵୬
" ଗୋପାଳ ବେଶ ଟ ୦ ୵୬
" ନର୍ତ୍ତକ ବେଶ ଟ ୦ ୵୬
" ସୁବଳ ବେଶ ଟ ୦ ୵୬
" ଚମ୍ପାହାର ଟ ୦ ୵୩
" ରତ୍ନହାର ଟ ୦ ୵୩
" ବନ୍ନମୃଗୀ ଟ ୦ ୵୩

ଶ୍ରୀ ନିତ୍ୟାନନ୍ଦ ପୁସ୍ତକାଳୟ,
ପୋଃ ଅଃ ଗୁଡ଼ମାଚୌକ,
ବାଲୁବଜାର—କଟକ

Digitized by srujanika@gmail.com